# ନିସର୍ଗର ଶେଷ ଗୀତି

## ନିସର୍ଗର ଶେଷ ଗୀତି    ଭାଗ-୧

ଆସନ୍ନ ବିସର୍ଗ  କାଳେ    ସର୍ବେ ଜୀବନ ବିକଳେ
ଦିବ୍ୟାଙ୍କା ଏ କବି ଭାଳେ କବିତା ଲେଖି କୁଶଳେ ॥

ଶୁଣ ସରୋବର    ସରିତ ସାଗର
    ମୋ ମନ ଗହୀର ଗିର;
କାନେ ମୋ ଆଶ୍ୱାସି    କହିବ ସମ୍ଭାଷି
    ଏ ମନ ହେଲେ ଅଧୀର ||    ୧||
ବସିଛି ଲେଖିବି    ମୋ ଆଗେ କେହି ବି
    ଲେଖି ନାହିଁ ଯେ କାହାଣୀ;
ପଢିବାର ପାଇଁ    କେ ଥିବେ କେ ନାହିଁ
    ନ ଜାଣି ଯିବି ବଖାଣି ||  ୨||
ଆଉ ଯେଣୁ କେହି    ଲେଖିବାର ନାହିଁ,
    ଏହି ହେବ ଶେଷ ଗୀତ,
ଆଗେ କି ଲେଖିବି    କି ବା ନ ଲେଖିବି ?
    ମନ ମୋର ଆନ୍ଦୋଳିତ ||    ୩||
ଏ ମର୍ତ୍ତ୍ୟ-ଭୁବନେ    ଗଗନେ ପବନେ,
    ଭୂଧର-ଶିଖର-ବନେ,
ବଲ୍ଲୁରେ କାନ୍ତାରେ    ସରେ ପାରାବାରେ
    ନଥିବ ମୋ ପରି ଜଣେ ||    ୪||
ବସିଛି ଅଭାଗୀ    ଲେଖିବାର ଲାଗି
    ନିସର୍ଗର ଶେଷ ଗୀତି;
ଲେଖିବି କେମନ୍ତେ,    ମୋ ନେତ୍ର ଅଗ୍ରତେ
    ପ୍ରତିସର୍ଗ ଉପସ୍ଥିତି ||    ୫||

୨୦୧୮୦୧୩୧୦୧୪୭

## ନିସର୍ଗର ଶେଷ ଗୀତି ଭାଗ-୨

ଦୋଷ ତ୍ରୁଟି ରହିବାର ଭରା ଜାଣେ ସମ୍ଭାବନା
ଆଙ୍କୁଛି ଲେଖନୀ ଗାର, ଯାଚନ କରି ମାର୍ଜନା ll
ସକଳ ପୂର୍ବଜ ମୋର ସର୍ବେ ଶାସ୍ତ୍ରବିପଣ୍ଡିତ
କ୍ଷମା କର ବାଗୀଶ୍ୱର ସର୍ବେଦେବ ତପୋବତ ll

ମୋପରେ ବି କେହି ନାହିଁ ନରଦେହୀ
ଆଙ୍କିବ ସଂଗୀତ ଗାରେ l
ନ ଲେଖିଲେ ଗୀତ ସାଙ୍ଗ ସାଥୀ ମିତ
ବିହର୍ଷ ଯିବେ ସେପାରେ l ୬ ll
ଶେଷ ଏ କବିତା ହେଲେ ପ୍ରଶଂସିତା
ଜୀବ ହେଲା ବେଳେ ଶେଷ
କେହି ତ ଶୁଣିବ ତା ମନ ବୁଝିବ
ଉପଶମ ହେବ କ୍ଲେଶ l ୭ ll
ନାହିଁ କେଉଁ ଗ୍ରନ୍ଥେ ଏ ଗୀତ ନିମନ୍ତେ
ଲୋଡା କେଉଁ ସଂସାଧନ,
ମୁହିଁ ଅଳ୍ପବୁଦ୍ଧି ରହିଲେ ଅଶୁଦ୍ଧି
କ୍ଷମା ଦେବ ପୂର୍ବଜନ l ୮ ll
କ୍ଷମା ଦେବ ମାତା କୃପା ପରିବୃତା
ଇରାଦେବୀ ସରସ୍ୱତୀ;
ମୁଁ ନୁହେଁ ମା କବି ସାହିତ୍ୟ-ପ୍ରସବୀ;
ଅନର୍ହ ମୁଁ ଗୋଟେ ଅତି l ୯ ll
ଦୋଷ କ୍ଷମା କର ପରମ ଈଶ୍ୱର
ସର୍ବଭୂତ ଅଧିପତି,
ସର୍ବ ବିଶ୍ୱାଧିପ ତିମିର-ପ୍ରଦୀପ
ଭୂତ-ଆଦି-ଅନ୍ତଗତି l ୧୦ ll

୨୦୧୮/୦୧/୩୧-୧୬୪୨

## ନିସର୍ଗର ଶେଷ ଗୀତି ଭାଗ-୩

ଆରମ୍ଭିବି ନିସର୍ଗର ଅନ୍ତିମ ଗାୟନ,
କରି ଆଗେ ଜନନୀର ଶ୍ରୀମୁଖ ଦର୍ଶନ ll
ମାଆ ପରି କିଏ ଆଉ ଏଡେ କୃପାମୟୀ;
ଶୁଣିବି ତା ଅନ୍ତର୍ବ୍ୟଥା, ଦେବ ମୋତେ କହି ll

କି ଯାତନା ପର୍ବ କରିବି ଆରମ୍ଭ
କେଉଁ ଶଙ୍କିତ ଅକ୍ଷରା?
କହ ବିଶ୍ୱଗନ୍ଧା ଜନନୀ ବସୁଧା
ସର୍ବଂସହା ବସୁନ୍ଧରା ll ୧୧ ll
ସମୁଦ୍ରବସନା ହିମାଦ୍ରିଶୋଭନା
ଆଦି ଉତ୍ପାତ-ଦର୍ଶନା,
ଯୁଗଯୁଗାନ୍ତର ସାରା ଜଗତର
କି ଘେନିଲ ନିର୍ଯାତନା ? ୧୨ ll
ସଲିଳ ଅନିଳ ସଙ୍ଗତେ ଅନଳ
ଅତଳ ଭୂତଳେ ରହି
ପ୍ରବଳ ସଂଗ୍ରାମେ ଭୀମ ପରାକ୍ରମେ
ଦେଇଥିଲେ ମାଗୋ ଦହି? ୧୩ ll
କେତେ ଉଲ୍କାପାତ ସହିଅଛୁ ମାତଃ,
ମହାକାଶ ବିଭୀଷିକା?
କହ ଶୂନ୍ୟପଥେ ଭେଟିଛୁ ମା କେତେ
ଯୁଗେଯୁଗେ ନୀହାରିକା? ୧୪ ll
ପୁତ୍ରମୁଖ ଚାହିଁ କହ ମା ବୁଝାଇ
କେ ଦିଏ ବେଶି କଷଣ,
ମହାଜାଗତିକ ଘାତ ଦୁର୍ବିପାକ,
ଅଣୁ ଅସ୍ତ୍ର ବିସ୍ଫୋରଣ? ୧୫ ll

୨୦୧୮୦୨୦୪-୦୦୧

ନିସର୍ଗର ଶେଷ ଗୀତି ଭାଗ-୪

ବୁଝିଲେ ଗୋଟିଗୋଟି . କାହାଣୀ କୋଟିକୋଟି
ତୁଳୀର ତଳପେ ମୋ . ଗଳପ ଯିବ ଲୋଟି;
ଜନନୀ ବିଶ୍ୱସହା . ଜଳନ ମହା ମହା
ସହେ ମରମ-ଦହା . ଜାଣିବି, କଲି ସ୍ପୃହା ॥

ନିଜ ହାତେ ଚିରି ତୋ ସମ୍ପଦ ଶିରୀ
ନର ସୃଜେ ବିପନ୍ନତା;
ସେ ଲାଗି ତୋ ମୁଖ ଘାରିଛି କି ଦୁଃଖ,
ହୃଦଗର୍ଭେ ବିଷନ୍ନତା ? ୧୬||
ଭାଷା ରାଷ୍ଟ୍ର ଧର୍ମ ଆଳେ ଅଭ୍ୟାଗମ
ଦିଏ କି ବେଶି କଷଣ ?
ଅବା ତୋ କୋଳର ସୁତ ସକଳର
ଅଧିମାତ୍ର ଆଚରଣ ? || ୧୭||
ଦେଖିଥିବୁ ମାତା ଧର୍ଷିତା ଦୁହିତା,
ନାରୀ ପରେ ନିର୍ଯାତନା;
ମାନ ଧନ ଜନ ଉନ୍ମଦ ଯୌବନ
ଘେନି ଭାଗ୍ୟ ବିଡମ୍ବନା || ୧୮||
ତୁହି ମା ପାବନୀ ନିଶ୍ଚଳା ଅବନୀ
ଦୟାମୟୀ ! ଏ ତୋ ସୁତ:
ଏ କୁଳଘାତକେ ଅକ୍ଷମ୍ୟ ଶାବକେ
ତୋ କୋଳେ କେମନ୍ତେ ଜାତ ? ୧୯||
ପାଇନି ଦର୍ଶନ ଜନ୍ମଦ ବଦନ
ସେ କି ଦୂରେ କରି ରୋଷ ?
ମୋତେ ନ ଲୁଚାଇ କହ ମା ବୁଝାଇ
ଅଛି କିଛି ପିତୃଦୋଷ ? ୨୦||

ଲଲାଟେନ୍ଦୁ କବି

ନିସର୍ଗର ଶେଷ ଗୀତି ଭାଗ-୫

ଏବେ ଜିଜ୍ଞାସା ଜାଗେ କି ଘଟିଅଛି ଆଗେ;
କି ଥିବ ଚ'ଉଦିଗେ ଅଖିଳେ ଆନ ଭାଗେ ||
ଅଛି କେତେ ସମୟ ସର୍ଜନା ହେବ ଲୟ;
ମନ ହୁଏ ଅଥୟ ରଚିବି ପଦଚୟ ||

ଶୁଣ ଭୂତାକାଶ ଅପୂର୍ବ ଉଦାସ
ନିର୍ଘୋଷ ସର୍ବତୋମୁଖ;
ନିର୍ଜର ନିର୍ଦୋଷ ଗମ୍ଭୀର ନଭସ
ଅନଞ୍ଜନ ଅଭୀରୁକ || ୨୧||
ଦେଖିଛ କି ଥରେ ଯୁଗ ଯୁଗାନ୍ତରେ
ମନ୍ଦଭାଗ୍ୟ କେହି ଆନ;
ବସି ଏକଟିରେ ଲେଖିଛି ଏକାନ୍ତେ
ନିସର୍ଗର ଶେଷ ଗାନ ? ୨୨||
ଦେଖିଛ ଦୂରସ୍ଥେ ଆନ ତାରାପଥେ
ଏଠାପରି ସଭ୍ୟଜନ ?
ତାଙ୍କୁ ଅଛି ଜଣା ଭବ୍ୟ ଦୁର୍ଘଟଣା,
ପ୍ରତ୍ୟାସନ୍ନ ପ୍ରଭଞ୍ଜନ ? ୨୩||
ଅଦୃଶ୍ୟ ଅଞ୍ଚଳେ ନକ୍ଷତ୍ର ମଣ୍ଡଳେ
ଚାଲିଛି କି ପ୍ରତିଘାତ ?
ସେ ମହା ପ୍ରଘାତେ କାହିଁ ସୁରପଥେ
ଲାଗିଛି କି ଅଗ୍ନ୍ୟୁତ୍ପାତ ? ୨୪||
ତୁମେ ଦେଖିଥିବ ମନେ ରଖିଥିବ
ବହୁ ପୂର୍ବ କଳ୍ପକ୍ଷୟ;
କହି ପାରିବ କି କେତେ ଅଛି ବାକି
ଲେଖିବାକୁ ସୂର୍ଯ୍ୟୋଦୟ ? ୨୫||

ଲଲାଟେନ୍ଦୁ କବି ୨୦୧୮୦୨୧୧-୦୨୩୩

ନିସର୍ଗର ଶେଷ ଗୀତି ଭାଗ-୬

ଜାଣିବା ପାଇଁ ମତି ଯେବେବେଳେ ଯାଏ ପ୍ରାଣ
ସତେ ରୋଦେ ପ୍ରକୃତି ଦେଖି କୋଟି ପ୍ରୟାଣ ॥
କିଏ କି କରେ କ୍ରିୟା, କେ କରେ ପ୍ରତିକ୍ରିୟା,
କେ କାନ୍ଦେ ଅଦିନିଆଁ, କାହାର ଫାଟେ ହିଆ ॥

ତୁମେ ଦେଖି ଥିବ କେଉଁ ପରି ଜୀବ
କୋଟି କୋଟି ପ୍ରଳୟରେ;
ଗୋଟି ଗୋଟି ମରି ପଡୁଥିବେ ଝରି
ମୃତ୍ୟୁଦେବୀ ଆଳୟରେ || ୨୬||
ଯିବା ମାତ୍ରେ ଜଣେ ଆତ୍ମୀୟ ସ୍ୱଜନେ
ଉଠୁଥିବ ବିଳାପନ;
ଜଳେ, ଧରାତଳେ, ଶୁଷିଲେ ଅନଳେ
ଘଟୁଥିବ ପ୍ରକମ୍ପନ || ୨୭||
ସେ ମହା କମ୍ପନେ ଆଶୟ ଗହନେ
କାନ୍ଦି ଉଠୁଥିବ ଗିରି;
ବିଷାଦ ବିହ୍ୱଳେ କାରୁଣ୍ୟ ବିକଳେ
ଦିଏ କି ତା ବୁକୁ ଚିରି || ୨୮||
ସ୍ୱାର୍ଥକ ବିନାଶେ କାଳର ସନ୍ତ୍ରାସେ
ଫାଟି ପଡୁଥିବ ଧରା ;
ଏକକୁ ଆରେକ ଲଭି ପୁତ୍ରଶୋକ
ବିଳପି ବେଦନାଭରା || ୨୯||
କି କରେ ସାଗର, ପ୍ରଭଞ୍ଜନ ଖର,
ବିଶ୍ୱମ୍ଭର ଭୟଙ୍କର ?
ସହିବାର ପାଇଁ ଥାଏ କି ବା ନାହିଁ
ବଳବତ୍ତା ଏହାଙ୍କର ? ୩୦||

୨୦୧୮୦୨୧୩୦୪୩୦

## ନିସର୍ଗର ଶେଷ ଗୀତି ଭାଗ-୭

ଦେଖିବି ଅନ୍ତିମ ପ୍ରକୃତି-ସମ୍ଭାର
ଗିରି ବନ ଲତା ବଲ୍ଲୂର ପ୍ରାନ୍ତର;
ବାର୍ତ୍ତାଳାପ ଲାଗି ହିମାଚଳ ପାଶେ
ଏବେ ଉପଗତ ହୃଦୟ ଆବେଶେ ॥

ପୁଣ୍ୟ ଧରାଧର ଭୂରୁହସମ୍ଭାର !
ଆସିଅଛି ସନ୍ନିଧାନେ;
କରି ଆଲିଙ୍ଗନ, ବତ୍ସଳ ଭାବନ,
କହି ଦିଅ କାନେ କାନେ || ୩୧||
ସାଗରନନ୍ଦନ ତୁଷାରଶୋଭନ
ହିମପ୍ରସ୍ଥ; ହିମାଚ୍ଛନ୍ନ
ସ୍ତବ୍ଧ ମୌନବ୍ରତୀ ଗମ୍ଭୀର ମୂରତି
କର ଆସ୍ୟ ଉନ୍ମୋଚନ ||୩୨||
ନିଶ୍ଚେ ଥିବ ମନେ ସାଗର ମନ୍ଥନେ
କୀଲାଳ, ପଲଳ ବୋଳି,'
ହେଲ ଆବିର୍ଭାବ ନିଶ୍ଚଳସ୍ୱଭାବ,
ଦ୍ୟୁମତ ମସ୍ତକ ଟେକି || ୩୩||
ଜନନୀ ଜଠର ତେଜି ଗିରିବର
ତୁମ ପ୍ରଥମ ପ୍ରଭାତେ
ହେଲା ରୋମହର୍ଷ, ଅବା ଅପକର୍ଷ
ବାଲ୍ୟତାରୁ ବଜ୍ରାଘାତେ ?? ୩୪||
ବୟସ ବିଭାଗେ ଲଭି ଅକସ୍ମାତେ
କ୍ଷିତିକମ୍ପେ ଉତ୍କମ୍ପନ;
ହେଲା କି ବୈମୁଖ୍ୟ ବୈରକ୍ତ୍ୟ ବୈରାଗ୍ୟ,
ବୈମନସ୍ୟ ସମ୍ମୋହନ ?୩୫||

୨୦୧୮୦୨୧୧-୦୨୩୩

## ନିସର୍ଗର ଶେଷ ଗୀତି ଭାଗ-୮

ହର୍ଷୁଳ ଶୂଳିକ ମାର୍ଜାର ମୂଷିକ
ଶାର୍ଦ୍ଦୂଳ ଭଲ୍ଲୁକ କରୀ;
କେତେ ସରୀସୃପ, ମର୍କଟ ବିରୂପ,
ବିହାୟସ ଥିଲ ଧରି|| ୩୬||
କେତେ ଗୁଳ୍ମଲତା ସାଥେ ବତ୍ସଳତା,
ମଞ୍ଜରୀକ, ମହାତରୁ
ବୃର୍ଜବନ୍ଧୁ, ଅବ୍ଜ, ବିନ୍ଦୁରକ, ଭୂର୍ଜ,
ଶର୍କରା-କୁଙ୍କିମଦାରୁ || ୩୭||
କେତେ ମୁନି ଋଷି ସାଧକ ସନ୍ନ୍ୟାସୀ
ଥିଲେ ଦିନେ ତପୋରତ;
କାହିଁ ବର୍ଣ୍ଣାଶ୍ରମ ଏବେ କି ବିଷମ
ଜନସ୍ରୋତ ଅବିରତ || ୩୮||
ନାହିଁ ବଣ୍ୟପଶୁ, ଲୁପ୍ତ ଦାସ ଦସ୍ୟୁ,
କ୍ଷୁଣ୍ଣ ସେ ବନ ସମ୍ଭାର;
କାହିଁ ବ୍ରହ୍ମଦେଶ କାହିଁ ହିନ୍ଦୁକୁଶ
ବିକ୍ଷତ ତୁମେ ପ୍ରାକାର || ୩୯||
ଶୋଭା ଦେଲେ ସାରି ଆରୋହଣକାରୀ
ବିପଣନକାରୀ ଦଳ;
କଲା କି ବ୍ୟଥିତ ଘାତ ପ୍ରତିଘାତ,
କହ ତୁମ୍ଭ ଅବିଚଳ|| ୪୦||

୨୦୧୮୦୨୨୫-୨୦୨୦

**ହର୍ଷୁଳ=deer, ଶୂଳିକ= hare; ଶାର୍ଦ୍ଦୂଳ= tiger, leopard, lion; କରୀ= elephant; ବିରୂପ= monstrous; ବିହାୟସ= bird; ବତ୍ସଳତା= affectionateness; ମଞ୍ଜରୀକ= species of fragrant tuLasI; ବୃର୍ଜବନ୍ଧୁ= alder; ଅବ୍ଜ= Indian Oak [Barringtonia acutangula - Bot.,]; ବିନ୍ଦୁରକ= soapberry tree [Sapindus saponaria.Bot.]; ଭୂର୍ଜ= birch tree**

**[Betula - Bot.];ଶର୍କରା-କୁଞ୍ଚିମଦାରୁ= sugar maple [Acer saccharum - Bot.]; ଦାସ, ଦସ୍ୟୁ= extinct himAlayan tribes]; ପ୍ରାକାର= wall; ଦୃପ୍ତ= strong; Note: ବୃର୍ଜବନ୍ଧୁ, ଅକ୍ସ, ବିନ୍ଦୁରକ, ଭୂର୍ଜ, ଶର୍କରା-କୁଞ୍ଚିମଦାରୁ, these are now rare or extinct, himalayan trees**

ନିସର୍ଗର ଶେଷ ଗୀତି ଭାଗ-୯

ଗିରିବନ ତରୁଲତା କୁଶଳ, କଷଣ
ଜାଣିବାକୁ ଏବେ ତାଙ୍କୁ କଲି ସମ୍ଭାଷଣ ॥

ବନାନୀ ବାଟିକା ପାଦପ ଲତିକା
ବିଟପ ଇଷିକା ଶୁଣ;
ତୁମ ସବୁଜିମା ଆରଣ୍ୟ ସୁଷମା
ନର କରି ଗଲା କ୍ଷୁଣ୍ଣ? ୪୧||
ତା' ଯନ୍ତ୍ର ପ୍ରଘର୍ଷେ ରସାୟନ ସ୍ପର୍ଶେ
କମ୍ପି ଉଠିଥିବ ତନୁ;
କ୍ଷୟିତ ବିପିନ ତହୁଁ ଦିନୁ ଦିନ
ପାସୋରି ନ ଥିବ ମନୁ ||୪୨||
ରାଷ୍ଟ୍ର ପ୍ରତିରକ୍ଷା ମହାକାଶ ପ୍ରେକ୍ଷା,
ଜାତି ଜାତି ଆଳ କରି,
ସ୍ୱଦେଶାଭିମାନେ ସର୍ବକାର-ଜନେ
ଛେଦନ୍ତି କୁଠାର ଧରି || ୪୩||
କରିଛ ସହନ ଖାଣ୍ଡବ ଦହନ
ତନୁ କରି ଖିନ୍ନ-ଭିନ୍ନ;
ଅଙ୍ଗାର ସମିଧ ଭୂମି ଅତିଲୁଣ୍ଠ
ପ୍ରଦାହନ କ୍ଷତଚିହ୍ନ || ୪୪||
ଏବେ ବଜ୍ରଚୂର୍ଣ୍ଣ- ଅରଣ୍ୟ ଗଠନ
ସର୍ବ ଦିଗ୍‌ଦେଶେ ଆଦ୍ୟତା;
ସେ ଲାଗି ଆରଣ୍ୟ ପାଦପ ଛେଦନ
ମରମେ ଦିଏ କି ବ୍ୟଥା ? ୪୫||

ଲଲାଟେନ୍ଦୁ କବି ୨୦୧୮୦୩୦୭-୧୨୦୦

ବନାନୀ= ଘୋର ବନ; ବାଟିକା= ଉଦ୍ୟାନ; ବିଟପ= ବୁଦା; ଈଷିକା= କାଶତଣ୍ଡୀ ଜାତୀୟ ଉଦ୍ଭିଦ; ପ୍ରଘର୍ଷ= ଘର୍ଷଣ; ତ୍ରାସ= ଭୟ; ପ୍ରେକ୍ଷା= ଦୃଷ୍ଟି/ନଜର ରଖିବା; ସର୍ବକାର-ଜନ= ସରକାରୀ ଲୋକ; ସମିଧ= ଇନ୍ଧନ; ବଜ୍ରଚୂର୍ଣ୍ଣ-ଅରଣ୍ୟ= ସିମେଣ୍ଟ ଜଙ୍ଗଲ; ଆଦ୍ୟତା= ଅଗ୍ରାଧିକାର;